# କବିବର ରାଧାନାଥ

## —ସାଧାସିଧା ଇନ୍‌ସପେକ୍‌ଟର ସାହେବ—

ଢେଙ୍କାନାଳର ବାଙ୍ଗୁରସିଂହ ନାମକ ଗୋଟିଏ ଗାଁ । ଗାଁଟି ଜଙ୍ଗଲ ଭିତରେ । ତା ଚାରିପାଖରେ ଅଳ୍ପ ଦୂରରେ ପାହାଡ଼ସବୁ ଘେରି ରହିଥାଏ । ପାହାଡ଼ ଦେହରେ ନାନା ରକମର ଗଛଲତା; ମୁଣ୍ଡ ଉପରେ ମେଘ ଯେପରି ଲହଡ଼ି ଭାଙ୍ଗୁଛି । ଦୂରକୁ ତାହା ଅତି ସୁନ୍ଦର ଦେଖାଯାଉଥାଏ ।

ସେହି ଗାଁ ମୁଣ୍ଡରେ ପ୍ରାଇମେରି ସ୍କୁଲ । ଛୋଟ ଛୋଟ ପିଲାଗୁଡ଼ିଏ ପାଠ ପଢ଼ନ୍ତି । ସେଦିନ ସେ ଗାଁରେ ହୁଲସ୍ଥୁଲ ପଡ଼ିଗଲା । ସମୁଦାୟ ଓଡ଼ିଶାର ସ୍କୁଲବିଭାଗର ବଡ଼ ହାକିମ ଇନ୍‌ସପେକ୍ଟର ସାହେବ ସ୍କୁଲ ଦେଖିବାକୁ ଆସିବେ । ସାଧାରଣତଃ ଛୋଟ ସ୍କୁଲକୁ ଦେଖିବାକୁ ସାନ ହାକିମମାନେ ଆସନ୍ତି । ବଡ଼ ହାକିମ ବଡ଼ ବଡ଼ ସ୍କୁଲ ଦେଖନ୍ତି । ଗାଁ ଗାଁ ବୁଲି ପ୍ରାଇମେରି ସ୍କୁଲ ଦେଖିବାକୁ ତାଙ୍କୁ ସମୟ ନ ଥାଏ । ତାଙ୍କ ମାନ-ମର୍ଯ୍ୟାଦାରେ ବି ବାଧେ...

ସମସ୍ତେ ଜାଣନ୍ତି, ସବୁ ତଳ ହାକିମ ସବ୍‌ଇନ୍‌ସପେକ୍ଟର ପ୍ରାଇମେରି ସ୍କୁଲ ଦେଖିବେ । ତାଙ୍କ ଉପରକୁ ଥିବା ଜିଲ୍ଲାଇନ୍‌ସପେକ୍ଟର ମାଇନର ସ୍କୁଲ ଦେଖିବେ । ସବୁଠାରୁ ବଡ଼ ହାକିମ ଇନ୍‌ସପେକ୍ଟର ସାହେବ ବଡ଼ ବଡ଼ ସ୍କୁଲମାନ ପରୀକ୍ଷା କରିବେ । କିନ୍ତୁ ଏଠାରେ ଓଲଟା କଥା ସବୁଠାରୁ ଯେ ବଡ଼ ହାକିମ, ସେ ସବୁଠାରୁ ସାନ ସ୍କୁଲ ଦେଖିବାକୁ ଆସୁଛନ୍ତି ।

ତେବେ ବଡ଼ ହାକିମଙ୍କର ତ ହୁକୁମ; ତାହା ଅନ୍ୟଥା କରିବ କିଏ ? ଇନ୍‌ସପେକ୍ଟରଙ୍କ ଇଚ୍ଛା, ସବୁ ଛୋଟ ଛୋଟ ସ୍କୁଲ ସେ ନିଜେ ଦେଖିବେ । କେଉଁଠି କିପରି ପଢ଼ାପଢ଼ି ହେଉଛି, ତାହା ପରୀକ୍ଷା କରିବେ ।

ଜିଲା ଇନ୍‌ସପେକ୍ଟର ସବ୍‌ଇନ୍‌ସପେକ୍ଟରଙ୍କ ପାଖକୁ ଏ କଥା ଲେଖିଲେ। ସବ୍‌ଇନ୍‌ସପେକ୍ଟର ସ୍କୁଲ ମାଷ୍ଟରଙ୍କ ପାଖକୁ ହୁକୁମ ପଠାଇଲେ—ସ୍କୁଲଘର ସଫାସୁତୁରା କରି ରଖିବ । ସବୁ ପିଲାଙ୍କୁ କହିବ, ଧୋବ ଲୁଗା ପିନ୍ଧି ଆସିବେ । ଖୋଦ୍ ଇନ୍‌ସପେକ୍ଟର ସାହେବ କାଲି ଦଶଟାବେଳେ ଯାଇ ତୁମ ସ୍କୁଲ ଦେଖିବେ । ତାଙ୍କ ସାଙ୍ଗରେ ଆମେମାନେ ବି ଯିବୁ ।

ଏ ଚିଠି ପାଇ ମାଷ୍ଟରଙ୍କ ଆଖି ଖୋସି ହୋଇଗଲା । ଗାଁର ଗ୍ଲେଟିଆ ସ୍କୁଲ, ସ୍କୁଲଆଡ଼ ଅଳିଆଗଦା, ମରାମତି ଅଭାବରୁ ଘର ଭାଙ୍ଗିଯିବା ଉପରେ । ଏ ସ୍କୁଲକୁ ପୁଣି ଆସିବେ ବଡ଼ ହାକିମ ! ଆସି କଅଣ ଦେଖିବେ ? ଟିକିଏ କିଛି ଦୋଷତ୍ରୁଟି ରହିଲେ ତ ତାଙ୍କ ଦାନାପାଣିଗଣ୍ଡାକ ଯିବ । ସ୍କୁଲଟା ବି ଉଠିଯାଇପାରେ । ମାଷ୍ଟର ବିଚରା ଚିନ୍ତାରେ ଅଥୟ ହୋଇ ପଡ଼ିଲେ ।

ଯେଉଁ ଦିନ ହାକିମ ଆସିବାର କଥା, ସେଦିନ ସକାଳୁ ମାଷ୍ଟର ସ୍କୁଲକୁ ଆସିଲେ । ହାକିମ ଦଶଟାବେଳକୁ ଆସିବେ ବୋଲି ଚିଠି ଆସିଛି । ମାଷ୍ଟର ସକାଳୁ ଆସି ଗୋଟିଏ ମୂଲିଆ ଡାକିଲେ । ଘରର ଭିତର ବାହାର ତା ହାତରେ ସଫା କରାଇଲେ । ନିଜେ ତା ସଙ୍ଗରେ ରହି ଗୋଟି ଗୋଟି କାମ ବତାଇ ଦେଉଥାନ୍ତି ।

ଘଣ୍ଟା ଘଣ୍ଟା ନଅଟା ବାଜିଗଲା । ଗୋଟି ଗୋଟି ହୋଇ ପିଲା ବହି ବସ୍ତାନି ଧରି ଆସିଗଲେଣି । ତଥାପି ଘର ସଫା ହେବା କାମ ସରିନାହିଁ । ମୂଲିଆଟି ଥରକୁ ଥର ଘର ଓଳାଇ ଝାଟୁଆ ଆଣି ପିଣ୍ଡାରେ ପକାଇ ଦେଇଯାଉଛି । ଘର ଓଳା ସଇଲେ, ପିଣ୍ଡା ସଫା କରିବ ।

ଏହି ସମୟରେ ଜଣେ ଲୋକ ସେଠାକୁ ଆସିଲେ । ଜଣାନାହିଁ, ଶୁଣା ନାହିଁ । ସ୍କୁଲ ହତାରେ ଠିଆ ହୋଇ ଟିକିଏ ଏଣିକି ତେଣିକି ଚାହିଁଲେ । ମନକୁ ମନ କଅଣ ଭାବି ସେହି ପିଣ୍ଡାରେ ତଳେ ବସି ପଡ଼ିଲେ ।

ଦୂରରୁ ପାହାଡ଼ଗୁଡ଼ିକ ଅତି ସୁନ୍ଦର ଦେଖାଯାଉଥାଏ । ଲୋକଟି ସେହି ଆଡ଼କୁ ଏକ ଧ୍ୟାନରେ ଚାହିଁ ରହିଥାନ୍ତି; ସତେ ଯେପରି ସେ ଶୋଭା ଦୁଇ ଆଖିରେ ପିଇଯାଉଛନ୍ତି ।

ମୂଲିଆଟି ପଚାରିଲା, "କିଏ ରେ ତୁମେ, ଏଠୁ ଉଠ । ଆଜି ବଡ଼ ସାହେବ ଏ ସ୍କୁଲ ଦେଖିବାକୁ ଆସିବେ । ସେଥିପାଇଁ ଏହା ସଫାସୁତୁରା ହେଉଛି । ତୁମେ ଏଠି ବସିପଡ଼ିଲ କାହିଁକି ?"

ଲୋକଟିଙ୍କୁ ଏ କଥା ମୋଟେ ଶୁଭୁ ନ ଥାଏ । ସେ ତ ଦୂରର ପାହାଡ଼ ଶୋଭା ଦେଖି ତନ୍ମୟ, ଏକାବେଳକେ ମଜ୍ଜି ଯାଇଥାନ୍ତି ।

ମୂଲିଆଟି ଥରେ ଦୁଇ ଥର ପଚାରିଲା; କିନ୍ତୁ ଜବାବ କିଛି ପାଇଲା ନାହିଁ । ବୋଧହୁଏ ମନେ ମନେ ଟିକିଏ ରାଗି ଯାଇଥିବ ।

ସେ ତା କାମରେ ଲାଗିପଡ଼ିଲା । ଘର ଶେଷଥର ପାଇଁ ଓଳାଇ ଅଳିଆଗଦା ଆଣି ଲୋକଟି ଉପରକୁ ଫୋପାଡ଼ି ଦେଲା । ଲୋକଟି ସେ ଅଳିଆରେ ପୋତିହୋଇ ପଡ଼ିଲେ । ସେତେବେଳକୁ ଯାଇ ତାଙ୍କର ଚେତା ଆସିଲା । ଦେହକୁ ଚାହିଁ ଦେଖିଲେ, ସଫା ଜାମାଟି ମଇଳା ହୋଇଯାଇଛି; ମୁହଁ, ଆଖି, କାନ, ଦେହଯାକ ଧୂଳି ।

ସେ ବରଗଡ଼ା ଉଠି ଝାଡ଼ିଝୁଡ଼ି ହୋଇପଡ଼ିଲେ । ମୁଣ୍ଡ, ମୁହଁ ସବୁ ପୋଛିଦେଲେ ।

ଏତିକବେଳକୁ ସବ୍‌ଇନ୍‌ସପେକ୍ଟର ବାବୁ ଆସିଗଲେ । ଜିଲା ଇନ୍‌ସପେକ୍ଟର ବି ତାଙ୍କ ସଙ୍ଗରେ ଥାଆନ୍ତି । ଜିଲା ଇନ୍‌ସପେକ୍ଟର ସେ ଲୋକଟିଙ୍କୁ ଦେଖି ଖୁବ୍ ବିନୟରେ ପ୍ରଣାମ କଲେ । ଓଶାରିବ କହିଲେ; "ଆପଣ କେତେବେଳୁ ଆସିଲେଣି କି ? ଆମର ଖାଇପିଇ ଆସୁ ଆସୁ ଟିକିଏ ଡେରି ହୋଇଗଲା ।"

ଲୋକଟି ହସି ହସି ଉତ୍ତର ଦେଲେ, "ମୁଁ ଅଧଘଣ୍ଟାଏ ହେଲା ଆସିଲିଣି । ଏ ସ୍କୁଲର ଚାରିଆଡ଼େ ଯେତେ ପାହାଡ଼ ପର୍ବତ ଅଛି, ସେଗୁଡ଼ିକ ଭାରି ସୁନ୍ଦର ଦେଖାଯାଉଛି । ରାତିଦିନ ବସି ତାକୁ ଚାହିଁ ରହିବାକୁ ମନ ହେଉଛି । ମୁଁ ଏଠାରେ ବସି ସେହି ଶୋଭା ଦେଖୁ ଦେଖୁ ନିଜକୁ ଭୁଲି ଯାଇଥିଲି । ଏ ମୂଲିଆଟି ଘରର ଝାଟିଆକୁଟା ଆଣି ମୋ ଉପରେ ପକାଇଦେଇ ନ ଥିଲେ, ଆଉ କେତେବେଳ ଯେ ସେମିତି ବସିଥାନ୍ତି କିଏ ଜାଣେ ?

ସ୍କୁଲର ଶିକ୍ଷକ ଏତେବେଳ ସରିକ ଜାଣିପାରିଲେ ଯେ, ସେ ଲୋକଟି ବଡ଼ ହାକିମ—ଖୋଦ୍ ଇନ୍‌ସପେକ୍ଟର ସାହେବ। ସେ ଭୟରେ ଗୋଟାସୁଦ୍ଧା ଥରିବାକୁ ଲାଗିଲେ। ମୂଲିଆଟି ତ ଏହା ଦେଖି ବାଡ଼ିବାଟେ ଲୁଚି ପଳାଇଗଲା।

ଇନ୍‌ସପେକ୍ଟର ସାହେବ ସ୍କୁଲପିଲାଙ୍କୁ ପରୀକ୍ଷା କଲେ। ମାଷ୍ଟରଙ୍କୁ ପ୍ରଶଂସା କରି ଦରମା ବଢ଼ାଇଦେଲେ। ମୂଲିଆଟିକୁ ଡକାଇ ପଠାଇ ଦୁଇ ଟଙ୍କା ବକ୍‌ଶିସ୍ ଦେଲେ।

ଏଭଳି ସାଧୁଲୋକ ଦୁନିଆରେ ଆଉ କେତେ ଜଣ ମିଳିବେ ?"

ଏ ଇନ୍‌ସପେକ୍ଟର ସାହେବ ହେଉଛନ୍ତି କବିବର ରାଧାନାଥ ରାୟ। ସେ ଯେପରି ବଡ଼ କବି ଥିଲେ, ସେହିପରି ସାଧାସିଧା ସରଳ ଲୋକଟିଏ ଥିଲେ। ଆଡ଼ମ୍ବର କଣ, ଗର୍ବ କଣ—ସେ ଜାଣି ନ ଥିଲେ। ତାଙ୍କ ପରି ଦୟାଳୁ ଲୋକ ବେଶୀ ଦେଖାଯାଆନ୍ତି ନାହିଁ।

## —ନାସ ଟିକିଏ ଦିଅ—

ଆଉ ଦିନକର କଥା। ଗୋଟିଏ ସ୍କୁଲ ପରୀକ୍ଷା କରିବାକୁ ଯାଇ ରାଧାନାଥ ରାସ୍ତା କଡ଼ରେ ଠିଆ ହୋଇଛନ୍ତି। ସ୍କୁଲହତାରେ କିପରି ବଗିଚା ହୋଇଛି, ସୁନ୍ଦର ଫୁଲ ଫୁଟିଛି, ତାହା ଦେଖୁଛନ୍ତି। ସ୍କୁଲର ଜଣେ ପଣ୍ଡିତ ସେହି ବାଟ ଦେଇ ତରତର ହୋଇ ସ୍କୁଲକୁ ଚାଲିଛନ୍ତି। ସେ ଜାଣନ୍ତି, ଆଜି ଇନ୍‌ସପେକ୍ଟର ଆସିବେ; ଟିକିଏ ବିଳମ୍ବ ହୋଇଗଲେ ଅସୁବିଧା।

ସେ ତରତର ହୋଇ ଚାଲି ଯାଉଯାଉ ଦେଖିଲେ, ରାସ୍ତା ପାଖରେ ଜଣେ ଲୋକ ଠିଆ ହୋଇଛନ୍ତି। ସେ ନାସଦାନିରୁ ନାସ ନେଇ ଶୁଙ୍ଘୁଛନ୍ତି। ପଣ୍ଡିତେ ସାଙ୍ଗେ ସାଙ୍ଗେ ହାତ ବଢ଼ାଇଦେଲେ, କହିଲେ, "ଆରେ, ଏକା ଏକା ନାସ ଶୁଙ୍ଘୁଛ, ମୋତେ ଟିକିଏ ଦିଅ।" ରାଧାନାଥ ଚୁପ୍ ହୋଇ ନାସଦାନିଟି ବଢ଼ାଇଦେଲେ। ପଣ୍ଡିତେ ନାସ ଟିକିଏ ନେଇ ଦାନିଟି ଫେରାଇ ଦେଲେ, ହତା ଭିତରକୁ ପଶିଗଲେ। ରାଧାନାଥ କହିଲେ, "ଆଜ୍ଞା ଟିକିଏ ଶୁଣନ୍ତୁ।" ପଣ୍ଡିତେ ଠିଆ ନ ହୋଇ କହିଲେ, "ଆଜ୍ଞା ଫାଜ୍ଞା ନାହିଁ। ଆଜି ବଡ଼ ସାହେବ ଆସୁଛନ୍ତି; ଆଉ ଠିଆ ହୋଇ ତୁମ ସାଙ୍ଗରେ ଗପ କରିବାକୁ ମୋର ବେଳ ନାହିଁ।"

ପରେ ରାଧାନାଥ ସ୍କୁଲକୁ ଯାଇ ସବୁ କ୍ଳାସ ବୁଲି ପିଲାଙ୍କୁ ପରୀକ୍ଷା କଲେ । ପଣ୍ଡିତଙ୍କ କ୍ଳାସକୁ ପଶିଗଲା ବେଳକୁ ପଣ୍ଡିତେ ଦେଖିଲେ, ଯାହାଙ୍କଠାରୁ ସେ ନାସ ଆଣିଥିଲେ; ସେହେଉଛନ୍ତି ନଜେ ଇନ୍‌ସପେକ୍ଟର ସାହେବ । ଭୟରେ ତାଙ୍କ ଗୁଣ୍ଡି ଭିତର ଥରି ଉଠିଲା ।

ସେ ପଣ୍ଡିତେ ପିଲାଙ୍କୁ ଭଲ ପଢ଼ାଉଥିଲେ । ତାଙ୍କ କ୍ଳାସର ପିଲାଏ ସବୁ ଉତ୍ତର ଦେଲେ । ରାଧାନାଥ ଖୁସି ହୋଇ ପଣ୍ଡିତଙ୍କୁ ପ୍ରଶଂସା କରି ତାଙ୍କ ଦରମା ବଢ଼ାଇଦେଇ ଗଲେ ।

କେବଳ ବଡ଼ ହାକମ ହୋଇଥିଲେ ବୋଲି ତାଙ୍କୁ ଆଜ ପୂଜା କରାଯାଉ ନାହିଁ । ତାଙ୍କ କବିତା ପଢ଼ିଲେ ଲୋକ ନଜକୁ ଭୁଲିଯିବ । ଏତେ ସୁନ୍ଦର ସରଳ କବିତା ଖୁବ୍ କମ୍ ଅଛି । ଆମ ଦେଶ ଓଡ଼ିଶାର ବଣ ଜଙ୍ଗଲ, ପାହାଡ଼ପର୍ବତ, ନଦୀ ହ୍ରଦ, ଗାଁ ଗଣ୍ଡା—ସବୁ ବିଷୟ ତାଙ୍କ କବିତାରେ ସ୍ଥାନ ପାଇଛି । ତାଙ୍କ ଆଖିରେ ସବୁ ସୁନ୍ଦର, ସବୁ ଭଲ ।

## —ପିଲାଦିନ—

କବିବର ରାଧାନାଥ ୧୮୪୮ ମସିହାରେ ଜନ୍ମ ହୋଇଥିଲେ । ବାଲେଶ୍ୱର ଜିଲ୍ଲାର କେଦାରପୁର ଗ୍ରାମରେ ତାଙ୍କ ଘର । ତାଙ୍କ ବାପାଙ୍କ ନାମ ସୁନ୍ଦର ନାରାୟଣ ରାୟ ଓ ମାତାଙ୍କ ନାମ ତାରଣୀ ଦାସୀ ।

ରାଧାନାଥଙ୍କୁ ଯେତେବେଳେ ପାଞ୍ଚ ବର୍ଷ ବୟସ, ସେତେବେଳେ ତାଙ୍କ ମା ମରିଗଲେ । ଗାଁ ଲୋକେ ଆସି ଶବ ଉଠାଇନେଲେ । ରାଧାନାଥ ତ ପିଲାଲୋକ, ମରିଯିବା କଅଣ କିଛି ଜାଣନ୍ତି ନାହିଁ । ମାଆଙ୍କୁ କୁଆଡ଼େ ନେଇଯାଉଛ ବୋଲି କାନ୍ଦି କାନ୍ଦି ସେ ଶବ ପଛରେ ଗୋଡ଼ାଇଲେ । ପିଲାଟିର ବିକଳ ଦେଖି ସାହିର ଗୋଟିଏ ବୁଢ଼ୀ କହିଲା, "ଆରେ ପୁଅ, କାନ୍ଦି କାନ୍ଦି କୁଆଡ଼େ ଯାଉଛୁ ? ମା ପରା ମାମୁଘରକୁ ଯାଉଛନ୍ତି, ମାସକ ପରେ ଆସିବେ ଯେ । ଯା, ତୁ ଘରକୁ ଫେରି ଯା ।"

ରାଧାନାଥଙ୍କର ବିଶ୍ୱାସ ହୋଇଗଲା । ସେ କାନ୍ଦ ଭୁଲିଯାଇ ପାଖରେ ଥିବା ଲଣ୍ଠାରୁ କଣ୍ଢେଇକୋଳି ତୋଳି ଖାଇଲେ । କିଛି ସମୟ ପରେ ମଶାଣିରୁ ନିଆଁ ଦେଖାଗଲା । ଲୋକେ କାଠଗଦା ଉପରେ ତାରିଣୀଦାସୀଙ୍କ ଶବ ରଖି ନିଆଁ ଲଗାଇଦେଲେ । ହୁ ହୁ ନିଆଁ ଜଳୁଥିବାର ଦେଖିପାରି ରାଧାନାଥ ଡରିଗଲେ । ଦୁଇ ଆଖି ବୁଜି ଘରକୁ ପଳାଇ ଆସିଲେ ।

ଘରକୁ ଆସିଲେ ସିନା, ମାତ୍ର ଯିବେ କାହା ପାଖକୁ ? ମାଆ ଥିଲେ ସିନା ଯାଇ ତାଙ୍କ କୋଳରେ ମୁହଁ ଗୁଞ୍ଜି ସବୁ ଡରଭୟ ଭୁଲି ଯାଆନ୍ତେ । ମାଆଙ୍କୁ ନ ପାଇ ପୁଣି ଥରେ କାନ୍ଦି ଉଠିଲେ । ବୁଢ଼ୀ ମାଆ ଆସି ତାଙ୍କୁ କୋଳ କଲେ, ନାନା କଥା କହି ବୁଝାଇବାକୁ ଲାଗିଲେ ।

ରାଧାନାଥ ପ୍ରଥମେ ଗାଁ ପାଠଶାଳାରେ ପଢ଼ିଲେ । ତାଙ୍କ ବାପା ସୁନ୍ଦର ନାରାୟଣ ବାଲେଶ୍ୱରରେ ଚାକିରି କରିଥାଆନ୍ତି । କିଛି ଦିନ ଗଲା ପରେ ସେ ରାଧାନାଥଙ୍କୁ ବାଲେଶ୍ୱର ନେଇଗଲେ । ସେଠାରେ ହାଇସ୍କୁଲରେ ତାଙ୍କ ନାମ ଲେଖାଇଦେଲେ ।

ରାଧାନାଥ ବଡ଼ ବୁଦ୍ଧିଆ ଥିଲେ । ଯାହା ଥରେ ପଢ଼ୁଥିଲେ, ତାହା ତାଙ୍କ ମନରେ ସବୁଦିନ ପାଇଁ ରହି ଯାଉଥିଲା । ମା'ଛେଉଣ୍ଡ ପିଲା—ତେଣୁ ପିଲାଟିଦିନୁ ସେ ରୋଗିଣା ହୋଇ ପଡ଼ିଥିଲେ । ନାନା ପ୍ରକାର ରୋଗ ସବୁଦିନ ତାଙ୍କଠାରେ ଲାଗି ରହିଥାଏ ।

ତାଙ୍କୁ ଷୋଳ ବର୍ଷ ବୟସ ବେଳେ ସେ ପ୍ରବେଶିକା ପରୀକ୍ଷାରେ ପାଶ୍ କଲେ । ରାଧାନାଥ ବାଲେଶ୍ୱରରୁ ପ୍ରଥମ ହୋଇ ଏ ପରୀକ୍ଷାରେ ପାଶ୍ କରିଥିଲେ । ସେ ସମୟରେ ଲୋକେ ମନେ କରୁଥିଲେ, ଯେ ପ୍ରବେଶିକା ପରୀକ୍ଷାରେ ପାଶ୍ କରେ, ତା ପରି ପଣ୍ଡିତ ଦୁନିଆରେ ଆଉ କେହି ନାହାନ୍ତି । ସେ ଖୁବ୍ ବଳୁଆ, ଭରି ସୁନ୍ଦର ପଞ୍ଚହତା ମରଦଟାଏ ନିଶ୍ଚୟ ହୋଇଥିବ ।"

ସେ ସମୟରେ ସେ ସ୍କୁଲକୁ କଲିକତାରୁ ଜଣେ ହେଡ଼ମାଷ୍ଟର ଆସିଥାଆନ୍ତି । ସେ ପ୍ରବେଶିକା ପରୀକ୍ଷାରେ ପାଶ କରିଛନ୍ତି ବୋଲି ଶୁଣାଗଲା । ପ୍ରବେଶିକା ପରୀକ୍ଷାରେ ଯେ ପାଶ କରିଛି, ସେ କପରି ମଣିଷ, ତାହା

ଦେଖିବା ପାଇଁ ଶହ ଶହ ଲୋକ ଯାଇ ତାଙ୍କ ଘର ପାଖରେ ରୁଣ୍ଡ ହେଲେ । କିଏ ପାଦ ଛୁଇଁ ମୁଣ୍ଡ ଆ ମାଇଲା, କିଏ ଦୂରରୁ ଦୁଇ ହାତ ଟେକ ଜୁହାର କଲା । ହେଡ଼ମାଷ୍ଟରଙ୍କ ଛାତି କୁଣ୍ଢେ ମୋଟ ହୋଇ ଯାଉଥାଏ । ଲୋକେ ମନେ ମନେ ଭାବୁଥାଆନ୍ତି, ଏ ତ ସାଧାରଣ ମନୁଷ୍ୟ ନୁହନ୍ତି—ଦେବତା । ଏ ଯେ ପ୍ରବେଶିକା ପରୀକ୍ଷାରେ ପାଶ୍ କରିଛନ୍ତି ।

ଯୋଗକୁ ସେହି ବର୍ଷ ରାଧାନାଥ ପରୀକ୍ଷା ଦେଲେ । ପରୀକ୍ଷାରେ ପାଶ୍ କଲେ । ବାଲେଶ୍ୱର ତମାମ ଏ କଥା ରାଷ୍ଟ୍ର ହୋଇଗଲା । ଯେଉଁମାନେ ରାଧାନାଥଙ୍କୁ ଆଗରୁ ଦେଖିଥିଲେ, ସେମାନେ କୁହାକୋହି ହେଲେ—ଆରେ ସୁନ୍ଦରବାବୁଙ୍କ ସେ ସେନ୍ଦ୍ରେବା ରୋଗିଣା ପୁଅଟା ପାଶ୍ କରିଛି । ତା ହେଲେ ପ୍ରବେଶିକା ପରୀକ୍ଷାଟା ପାଶ୍ କରିବା ସେମିତି କିଛି ବଡ଼ କଷ୍ଟ କାମ ନୁହେଁ । ଏଥରକ ଆମେ ଆମ ପୁଅମାନଙ୍କୁ ପଢ଼ାଇବା ।

—ଇନ୍‌ସପେକ୍‌ଟର—

ପାଶ୍ କରି ରାଧାନାଥ ଏଫ. ଏ. ପଢ଼ିବାକୁ କଲିକତା ଗଲେ । କିନ୍ତୁ ସେଠାରେ ବେଶି ଦିନ ରହିପାରିଲେ ନାହିଁ । ସବୁ ଦିନ ତ ବେମାରିଆ, ଏଣେ ପଇସାପତ୍ରର ବି ଅଭାବ । ତେଣୁ ବାଧ ହୋଇ ସେ ବାଲେଶ୍ୱର ଫେରି ଆସିଲେ ।

ସେ ପ୍ରଥମେ ବାଲେଶ୍ୱର ସ୍କୁଲର ତୃତୀୟ ଶିକ୍ଷକ ହେଲେ, ଦରମା ମାସକୁ ତିରିଶ ଟଙ୍କା । କିଛି ଦିନ ପରେ ପୁରୀ ଜିଲା ସ୍କୁଲକୁ ଦ୍ୱିତୀୟ ଶିକ୍ଷକ ହୋଇ ଗଲେ । ସେଠାରୁ ତାଙ୍କୁ ବାଙ୍କୁଡ଼ା ଜିଲା ସ୍କୁଲକୁ ବଦଳି କରାହେଲା ।

ସେ ଯେଉଁ ସ୍କୁଲରେ ରହୁଥିଲେ, ସେ ସ୍କୁଲର ପିଲା, ମାଷ୍ଟର ସମସ୍ତେ ତାଙ୍କ ଉପରେ ଖୁସି ହେଉଥିଲେ । ପିଲାମାନେ ତ ତାଙ୍କ ପାଖ ଛାଡ଼ିବାକୁ ମୋଟେ ରାଜି ହେଉ ନ ଥିଲେ । ସେ ଭଲ ପଢ଼ାଉଥିଲେ, ପିଲାମାନଙ୍କୁ ନିଜ ସାନ ଭାଇ ପରି ଖୁବ୍ ଆଦର ସ୍ନେହ ବି କରୁଥିଲେ ।

ବାଙ୍କୁଡ଼ାରୁ ଆସି ସେ ବାଲେଶ୍ୱର ଜିଲ୍ଲାର ଡେପୁଟି ଇନ୍‌ସପେକ୍ଟର ହେଲେ । ତାଙ୍କ କାର୍ଯ୍ୟକଳାପରେ ଟିକିଏ ହେଲେ ଦୋଷ ରହୁ ନ ଥିଲା । ତାଙ୍କ ଉଦ୍ୟମରେ ବାଲେଶ୍ୱରରେ ବହୁତ ଗୁଡ଼ିଏ ସ୍କୁଲ ବସିଲା; ବେଶୀ ପିଲା ପାଠ ପଢ଼ିଲେ । ସରକାର ତାଙ୍କ କାର୍ଯ୍ୟରେ ଖୁସି ହୋଇ ତାଙ୍କୁ ସମୁଦାୟ ଓଡ଼ିଶାର ଇନ୍‌ସପେକ୍ଟର କରିଦେଲେ ।

ସେ ସମୟରେ ରେଲଗାଡ଼ି କି ମଟର ଗାଡ଼ି ନ ଥିଲା । ଯୁଆଡ଼େ ଯିବାକୁ ହେଉଥିଲା, ବଳଦଗାଡ଼ିରେ କି ସୁଆରିରେ ଯିବାକୁ ପଡ଼ୁଥିଲା । ରାଧାନାଥ ଶଗଡ଼ରେ ବସି ଓଡ଼ିଶାର ସବୁ ସ୍କୁଲ ବୁଲି ଦେଖୁଥିଲେ । ଅନେକ ଜାଗାରେ ତାଙ୍କୁ ନେବା ପାଇଁ ସୁଆରି, ଟମ୍‌ଟମ୍ ଆଦିର ବ୍ୟବସ୍ଥା ହେଉଥିଲା । ମାତ୍ର ରାଧାନାଥ ସେଥିରେ ବସୁ ନ ଥିଲେ । ତାଙ୍କ ସାଙ୍ଗରେ ତ ତାଙ୍କ ପୂଝାରି, ଗୋଟିଏ ଚାକର ଓ ଚପରାଶି ସବୁ ବେଳେ ଥାଆନ୍ତି । ସେ କହୁଥିଲେ, "ମୁଁ ସୁଆରିରେ ଗଲେ, ଏମାନେ ସୁଆରି ପଛେ ପଛେ ଦଉଡ଼ି ଦଉଡ଼ି ଯିବେ ସିନା । ଏମାନଙ୍କୁ ଏତେ କଷ୍ଟ ମୁଁ ଦେବି ନାହିଁ ।" ତେଣୁ କୁଆଡ଼େ ଯିବାକୁ ହେଲେ, ସେ ବଳଦଗାଡ଼ିର ବ୍ୟବସ୍ଥା କରୁଥିଲେ । ଖଣ୍ଡିଏ ଗାଡ଼ିରେ ନିଜେ ବସୁଥିଲେ, ଆଉ ଖଣ୍ଡିଏ ଗାଡ଼ିରେ ଚାକର ପୂଝାରି ବସି ଯାଉଥିଲେ ।

ଏହିପରି ଓଡ଼ିଶାର ସବୁ ଗାଁ ଗଣ୍ଡା ସେ ବୁଲିଛନ୍ତି; ସବୁ ଅଞ୍ଚଳ ଦେଖିଛନ୍ତି । ଆଜିକାଲି ରେଲ ମଟର ହେଲାଣି; ଓଡ଼ିଶା ପାଇଁ ତିନିଜଣ ଇନ୍‌ସପେକ୍ଟର ଅଛନ୍ତି । ତଥାପି ସବୁ ସ୍କୁଲ ଇନ୍‌ସପେକ୍ଟରମାନେ ଦେଖିପାରୁ ନାହାନ୍ତି । କିନ୍ତୁ ସେତେବେଳେ ଜଣେ ମାତ୍ର ଇନ୍‌ସପେକ୍ଟର ଥିଲେ । ବଳଦଗାଡ଼ିରେ ବସି, ନ ହେଲେ ଚାଲି ଚାଲି ସବୁ ସ୍କୁଲ ବୁଲୁଥିଲେ; ପିଲାମାନଙ୍କୁ ଗୋଟି ଗୋଟି କରି ପରୀକ୍ଷା କରୁଥିଲେ । କେବଳ ପିଲାଙ୍କୁ ପରୀକ୍ଷା କରି ସେ ଚୁପ୍ ରହୁ ନ ଥିଲେ । ଦେଶରେ କିପରି ବେଶୀ ସ୍କୁଲ ବସିବ, ବହୁତ ପିଲା ପାଠ ପଢ଼ିବେ, ସେଇଥିପାଇଁ ସେ ନାନା ଉଦ୍ୟମ କରୁଥିଲେ । ଯେଉଁ ଅଞ୍ଚଳକୁ ଯାଉଥିଲେ, ସେଠାରେ ଯଦି କୌଣସି ପଣ୍ଡିତ କି ଗୁଣୀ ଲୋକର ନାମ ଶୁଣୁଥିଲେ, ତାଙ୍କ ପାଖକୁ ଯାଇ ତାଙ୍କ ସହିତ ଜଣାଶୁଣା ହେଉଥିଲେ । ସେମାନଙ୍କୁ ଦେଶଲୋକେ କିପରି ଆଦର

କରିବେ, ସେଥିପାଇଁ ଲାଗି ପଡ଼ୁଥିଲେ । କେଉଁଠି ଗରିବ ଲୋକଟିଏ, ଦେଖିଲେ, ତାକୁ ଟଙ୍କାପଇସା ଦାନ କରୁଥିଲେ । ନିଜେ ଦେଇ ନ ପାରିଲେ, ଅନ୍ୟଠାରୁ କରାଇ ଦେଉଥିଲେ ।

## —ଦୟାଳୁ ରାଧାନାଥ—

ରାଧାନାଥ କିପରି ସାଧାସିଧା ଲୋକ ଥିଲେ, ଆଗରୁ ତାହା କହିଛି । ତାଙ୍କ ହୃଦୟରେ ଦୟା ପୂରି ରହିଥିଲା । କାହାର ଦୁଃଖ କଷ୍ଟ ସେ ସହିପାରୁ ନ ଥିଲେ । ଯେ ଆସି ତାଙ୍କ ନିକଟରେ ନିଜ ଦୁଃଖ ଜଣାଉଥିଲା, ସେ ଲାଗି ପଡ଼ି ତାର ଦୁଃଖ ଦୂର କରୁଥିଲେ ।

ଥରେ ସେ କଟକ ଅଫିସରେ ବସି କାମ କରୁଛନ୍ତି । ଦେଖିଲେ କିଛି ଦୂରରେ ଗୋଟିଏ ସ୍ତ୍ରୀଲୋକ ମୁହଁଟି ଶୁଖାଇଦେଇ ଠିଆ ହୋଇଛି । ସେ ଅଫିସ ଆଡ଼କୁ ଆସିବ ବୋଲି ମନ କରୁଛି; କିନ୍ତୁ ଆସିବାକୁ ସାହସ ହେଉ ନାହିଁ । କିଛି ସମୟ ରାଧାନାଥ ତା ଆଡ଼କୁ ଚାହିଁ ରହିଲେ । ତାଙ୍କ ମନ ତରଳିଗଲା । ଚପରାଶିକୁ ପଠାଇ ସ୍ତ୍ରୀଲୋକଟିକୁ ପାଖକୁ ଡକାଇ ନେଲେ ।

ସ୍ତ୍ରୀଲୋକଟି ସାହସ ପାଇ କାନ୍ଦି କାନ୍ଦି କହିଲା, "ମୁଁ ବଡ଼ ଗରିବ । ଢିଙ୍କିଟିଏ ଥିଲା; ସେଥିରେ ଧାନ କୁଟି ପେଟ ପୋଷୁଥିଲି । କିଛି ଦିନ ତଳେ ନିଆଁ ଲାଗି ମୋ ଘର ଦୁଇ ବଖରା ପୋଡ଼ି ଯାଇଛି । ଢିଙ୍କିଟି ବି ପୋଡ଼ି ଯାଇଛି । ମୁଁ ମୁଣ୍ଡ ଗୁଞ୍ଜି ରହିବାକୁ ଜାଗା ନାହିଁ କି ଢିଙ୍କି ନ ଥିବାରୁ ଖାଇବାକୁ ପାଉ ନାହିଁ । ଆପଣଙ୍କ ନାଁ ଶୁଣି ଏଠାକୁ ଆସିଛି । କିନ୍ତୁ କାଳେ କିଏ କଅଣ କହିବ, ସେଇଥିପାଇଁ ଭିତରକୁ ଆସିବାକୁ ସାହସ ହେଉ ନ ଥିଲା ।"

ରାଧାନାଥ ପଚାରିଲେ; "କେତେ ଟଙ୍କା ହେଲେ ତୁମର କାମ ଚଳିଯିବ ?"

ସ୍ତ୍ରୀଲୋକଟି ମନେ ମନେ ହିସାବ କରି କହିଲା—"ଘରଖଣ୍ଡିକ କରିବାକୁ ପାଞ୍ଚ ଛଅ ଟଙ୍କା ଯାଏ ଲାଗିବ । ଢିଙ୍କିଖଣ୍ଡିକ ବାର ଅଣାରେ ହୋଇଯିବ ।"

ରାଧାନାଥ ତାଙ୍କ ପୁଅଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖି ସେ ସ୍ତ୍ରୀଲୋକ ହାତରେ ଦେଲେ । ତାଙ୍କୁ କହିଲେ, "ଏଠାରେ ମୋ ପାଖରେ ତ ଟଙ୍କା ନାହିଁ । ତୁମେ ଏ ଚିଠି ନେଇ ଆମ ଘରେ ଦେଲେ, ମୋ ପୁଅ ଟଙ୍କା ଦେଇଦେବ ।"

ସ୍ତ୍ରୀଲୋକଟି ଚିଠି ଆଣି ଘରେ ରାଧାନାଥଙ୍କ ପୁଅ ଶଶୀଭୂଷଣଙ୍କୁ ଦେଲେ । ଚିଠିର ଲେଖା ଅନୁସାରେ ଶଶୀଭୂଷଣ ଦଶଟଙ୍କା ତା ହାତକୁ ବଢ଼ାଇ ଦେଲେ । ବୁଢ଼ୀ ତାହା ନେଲା ନାହିଁ । କହିଲା, "ସାତ ଆଠ ଟଙ୍କା ହେଲେ ମୋର ଚଳିଯିବ । ମୁଁ ଦଶ ଟଙ୍କା କାହିଁକି ନେବି ?" ଶଶୀଭୂଷଣ ଯେତେ ବୁଝାଇଲେ ବି ସେ ବୁଝିଲା ନାହିଁ । ଦଶ ଟଙ୍କା ନ ଆଣି ପୁଣି ରାଧାନାଥଙ୍କ ପାଖକୁ ଫେରିଆସିଲା । ହାତ ଯୋଡ଼ି ତାଙ୍କୁ କହିଲା, "ହଜୁର, ମୁଁ ତ ସାତ ଟଙ୍କା ପାଇଁ କହିଥିଲି; ଆପଣଙ୍କ ପୁଅ ମୋତେ ଦଶ ଟଙ୍କା ଦେଉଛନ୍ତି କାହିଁକି ?"

ସ୍ତ୍ରୀଲୋକଟିର ଏପରି ସଚ୍ଚୋଟପଣିଆ ଦେଖି ରାଧାନାଥ ଖୁବ୍ ଖୁସି ହୋଇଗଲେ । ସେ କହିଲେ, "ଚିଠି ଲେଖିବାରେ ମୋର ଭୁଲ ହୋଇ ଯାଇଥିଲା । ପୁଣି ଥରେ ଏ ଚିଠି ନେଇ ଯାଅ । ସେ ଠିକ୍ ରୁପେ ଟଙ୍କା ଦେବେ ।" ଏହା କହି ଚିଠିରେ କୋଡ଼ିଏ ଟଙ୍କା ଦେବାକୁ ଲେଖିଦେଲେ । ସ୍ତ୍ରୀଲୋକଟିକୁ ସବୁ କଥା ବୁଝାଇ କହିଦେବାକୁ ବି ସେଥିରେ ସେ ଲେଖିଥିଲେ ।

ସ୍ତ୍ରୀଲୋକଟି ଆଉ ଥରେ ଚିଠି ଧରି ଆସିଲା । ଶଶୀଭୂଷଣଙ୍କୁ ସେ ଚିଠି ଦେବାରୁ ଶଶୀଭୂଷଣ ଘରୁ କୋଡ଼ିଏ ଟଙ୍କା ଆଣି ଦେଲେ । ଏତେ ଗୁଡ଼ାଏ ଟଙ୍କା ଦେଖି ତ ବୁଢ଼ୀର ଆଖି ଖୋସିହୋଇ ପଡ଼ିଲା । ଶଶୀଭୂଷଣ ବୁଝାଇଦେଇ କହିଲେ, "ତୁମେ ଏ ଟଙ୍କା ନିଅ, ଦୁଇ ବଖରା ଘର କରିବ । ଗୋଟିଏ ବଖରାରେ ତୁମେ ରହିବ, ଢିଙ୍କି ପକାଇବ । ଆର ବଖରାଟି ଭଡ଼ା ଲଗାଇଲେ ମାସକୁ ମାସ କିଛି ପଇସା ପାଇବ । ଯେଉଁ ମାସରେ ତୁମ ଦେହ ଖରାପ ହେବ, ସେ ମାସରେ ଆଉ ତ ଧାନ କୁଟିପାରିବ ନାହିଁ; ସେହି ଘରଭଡ଼ା ପଇସାରେ ଚଳିଯିବ । ସେଇଥିପାଇଁ ବାବୁ କୋଡ଼ିଏ ଟଙ୍କା

ଦେବାକୁ ଲେଖିଛନ୍ତି ।" ସ୍ତ୍ରୀଲୋକଟି ଏହା ଶୁଣି ଶହ ଶହ ଜୁହାର ପକାଇ ଖୁସିରେ ଚାଲିଗଲା ।

ଆଉ ଦିନକର କଥା—ସ୍କୁଲ ଦେଖିବାକୁ ଯାଇ ରାଧାନାଥ ମଫସଲର ଗୋଟିଏ ଡାକବଙ୍ଗଳାରେ ରହିଥାନ୍ତି । ସବୁ ଡାକବଙ୍ଗଳାରେ ଜଣେ ଜଣେ ବେହେରା ଥାଆନ୍ତି । ଯେଉଁ ବାବୁମାନେ ଡାକବଙ୍ଗଳାରେ ରହନ୍ତି, ସେ ବେହେରା ତାଙ୍କର ହାକିମଭ ବୁଝନ୍ତି । ଖାଇବା ପିଇବା ଜିନିଷପତ୍ର ଯୋଗାଡ଼ କରି ଆଣି ଦିଅନ୍ତି । ରାଧାନାଥ ଦେଖିଲେ; ସେ ଡାକବଙ୍ଗଳାରେ ଜଣେ ସ୍ତ୍ରୀଲୋକ କାମ କରୁଛି । ସେ ଘର ସଫା କଲା; ଦୁଧ, ପନିପରିବା ଯାହା ଦରକାର ପଡ଼ିଲା, ପଇସା ନେଇ ତାହା କିଣିଆଣି ଦେଲା । ସନ୍ଧ୍ୟାବେଳକୁ ରାଧାନାଥ ସେଠାରୁ ନାଆରେ ବସି ଅନ୍ୟ ସ୍ଥାନକୁ ଯିବାକୁ ବାହାରିଲେ । ସବୁ ଡାକବଙ୍ଗଳାରେ ଗୋଟିଏ ଖାତା ଥାଏ । ଯେଉଁ ବାବୁ ଡାକବଙ୍ଗଳାରେ ରହନ୍ତି, ତାଙ୍କର କିଅଣ ସୁବିଧା ଅସୁବିଧା ହେଲା, ତାହା ସେ ସେହି ଖାତାରେ ଲେଖିଦିଅନ୍ତି । ସେହି ଅନୁସାରେ ରାଧାନାଥ ଡାକବଙ୍ଗଳା ଖାତାରେ କିଛି ଲେଖିବାର କଥା । ସ୍ତ୍ରୀଲୋକଟି ବହି ଆଣି ବଢ଼ାଇଦେଲା । ରାଧାନାଥ ଲେଖିଲେ, "ଏଠାରେ ମୋର କିଛି ଅସୁବିଧା ହୋଇନାହିଁ ।" ସ୍ତ୍ରୀଲୋକଟି ତ ପାଠ ପଢ଼ି ନାହିଁ । ସେ ଭାବିଲା, ମୁଁ କାମ କରୁଛି ବୋଲି, ବୋଧହୁଏ ବାବୁ କିଅଣ ଖରାପ କରି ଲେଖିଦେବେ । ତେଣୁ ସେ ହାତଯୋଡ଼ି କହିଲା, "ହଜୁର, ମୋ ସ୍ୱାମୀ ଏଠାରେ କାମ କରେ । ସେ ଶକତ ବେମାରରେ ପଡ଼ିଛି । ତେଣୁ ମୁଁ ଆସି ଏଠାରେ କାମ କରୁଛି । କପରି କିଅଣ ହୁଏ, ମୁଁ ତ ଜାଣି ନାହିଁ । ମୋର ଯଦି କିଛି ଦୋଷ ହୋଇଥାଏ, ତେବେ କ୍ଷମା କରିବେ । ବହିରେ କିଛି ଖରାପ କଥା ଲେଖିବେ ନାହିଁ । ଲେଖିଲେ ସ୍ୱାମୀଙ୍କ ଚାକିରିଖଣ୍ଡିକ ଯିବ । ଆମେ ଦୁଇ ପ୍ରାଣୀ ଖାଇବାକୁ ପାଇବୁ ନାହିଁ ।"

ଏହା ଶୁଣି ରାଧାନାଥ ସାଙ୍ଗେ ସାଙ୍ଗେ ତାକୁ ଦୁଇଟି ଟଙ୍କା ବକ୍‌ସିସ୍ ଦେଲେ । ନିଜେ ତା ଘରକୁ ଆସି ସ୍ୱାମୀକୁ ଦେଖିଲେ, ଔଷଧ ପ୍ରଭୃତି ଦେବାର ବ୍ୟବସ୍ଥା କରିଦେଲେ ।

ରାଧାନାଥ ଏପରି ଦୟାଳୁ ଥିଲେ ଯେ, ଟିକିଏ କାହା ଦୁଃଖ କଥା ଶୁଣିଲେ ସାଙ୍ଗେ ସାଙ୍ଗେ ତାକୁ ସାହାଯ୍ୟ କରୁଥିଲେ । କିଏ ରୋଗରେ କଷ୍ଟ ପାଉଛି ଜାଣିଲେ, ତା ଘରକୁ ଯାଇ ଆଶ୍ୱାସନା ଦେଉଥିଲେ । ତାଙ୍କ ଚପରାଶି, ଚାକର ପ୍ରଭୃତିଙ୍କୁ ତ ସେ ନିଜର ସାଙ୍ଗ ପରି ମନେକରୁଥିଲେ । କାହାକୁ ଭୁଲରେ ହେଲେ 'ତୁ' କହୁ ନ ଥିଲେ; ସବୁବେଳେ 'ତୁମେ' କହୁଥିଲେ । ଥରେ ଗୋଟିଏ ଚପରାଶୀକୁ ଟଙ୍କାଟିଏ ଜୋରିମାନା ହୋଇଥିଲା । ସେ ରାଧାନାଥଙ୍କ ପାଖରେ ଗୁହାରି କରିବାରୁ ରାଧାନାଥ ନିଜ ପକେଟରୁ ବାହାର କରି ତାକୁ ଦୁଇଟି ଟଙ୍କା ବଢ଼ାଇଦେଲେ । ଥରେ ତାଙ୍କ ଚାକର ଉପରେ ପୁଅ ଶଶିଭୂଷଣ ଟିକିଏ ବିରକ୍ତ ହୋଇ ଗାଳି ଦେଇଥିଲେ । ରାଧାନାଥ ଏହା ଶୁଣିପାରି ନିଜେ ଯାଇ ଚାକରକୁ କ୍ଷମା ମାଗିଲେ । ଏଣେ ପୁଅକୁ ଏପରି ନ କରିବାକୁ ତାଗିଦା କରି ଦେଲେ ।

ରାଧାନାଥ ଖୁବ୍ ସରଳ ଭାବରେ ଅଳ୍ପ ଖର୍ଚ୍ଚରେ ଚଳୁଥିଲେ । ତାଙ୍କର ଭଲ ଦାମିକା ଲୁଗା କି ଦାମିକା ପୋଷାକପତ୍ର କିଛି ନ ଥିଲା । ଘିଅ ଦୁଧ କି ମାଛ ମାଂସ ସେ ଖାଉ ନ ଥିଲେ । ତେଣୁ ନିଜ ପାଇଁ ବେଶୀ କିଛି ପଇସା ଦରକାର ପଡୁ ନ ଥିଲା । ସେ ଯାହା ଦରମା ପାଉଥିଲେ, ସେଥିର ବେଶୀ ଭାଗ ଏହିପରି ଦାନ ଖଇରାତ କରି ଦେଉଥିଲେ ।

## —କବିବର ରାଧାନାଥ—

ରାଧାନାଥ ପାଠ ପଢୁଥିବା ସମୟରେ ଓଡ଼ିଆରେ କିଛି ବହି ନ ଥିଲା । ପିଲମାନେ ବଙ୍ଗଳା ବହି ପଢ଼ୁଥିଲେ । ରାଧାନାଥ ଚାକିରି କରିବା ସାଙ୍ଗେ ସାଙ୍ଗେ ବହି ଲେଖିବାରେ ଲାଗି ପଡ଼ିଲେ । ସେତେବେଳେ ବାଲେଶ୍ୱରରେ ବ୍ୟାସକବି ଫକୀରମୋହନ ସେନାପତି ଓ ଭକ୍ତକବି ମଧୁସୂଦନ ରାଓ ତାଙ୍କର ସାଙ୍ଗ ଥିଲେ । ଏ ତିନି ଜଣଯାକ ମିଶି ଓଡ଼ିଆ ବହି ଲେଖିଲେ । ଏମାନଙ୍କ ଉଦ୍ୟମରେ ଜଣେ ଧନୀଲୋକ ସେଠାରେ ଗୋଟିଏ ଛାପାଖାନା ବସାଇଲେ । ସେହି ଛାପାଖାନାରେ ବହିସବୁ ଛପା ହେଲା । ଓଡ଼ିଆ ପିଲାଏ ଓଡ଼ିଆ ବହି ପଢ଼ିବାକୁ ପାଇଲେ ।

ରାଧାନାଥ 'ତୁଳସୀସ୍ତବକ', 'ଦରବାର', 'ଚିଲିକା'; 'ଉଷା'; 'ମହାଯାତ୍ରା' ଏହିପରି ଅନେକଗୁଡ଼ିଏ କାବ୍ୟ ଲେଖିଛନ୍ତି । ତାଙ୍କୁ ପଢ଼ିଲେ ଜଣାଯିବ, ସତେ ଅବା ସେଥିରୁ ଅମୃତ ଝରି ପଡ଼ୁଛି । ଆମ ଦେଶରେ ଏପରି କୌଣସି ବଣ ପାହାଡ଼ ବା ନଦୀ ହ୍ରଦ ନାହିଁ, ଯାହା ବିଷୟରେ କି ରାଧାନାଥ ନିଜ କାବ୍ୟରେ ଲେଖି ନାହାନ୍ତି । ସେ ଦେଶର ସବୁ ଅଞ୍ଚଳ ବୁଲି ଯେଉଁଠି ଯାହା ଦେଖିଛନ୍ତି, ତାହା ନିଜ କବିତାରେ ବର୍ଣ୍ଣନା କରିଛନ୍ତି; ତାର ଖୁବ୍ ପ୍ରଶଂସା କରିଛନ୍ତି । ଆମ ଆଖିକୁ ଯେଉଁ ପାହାଡ଼ଟା ଖାଲି ଟାଙ୍ଗରା ପଥରଗଦା ପରି ଦେଖାଯାଏ, ରାଧାନାଥଙ୍କ ଆଖିକୁ ତାହା ଖୁବ୍ ସୁନ୍ଦର ଦେଖା ଯାଇଛି । ସମୁଦ୍ର, ହ୍ରଦର ପାଣି ତେଜ ଦେଖିଲେ ଆମ ଆଖି ଖୋସି ହୋଇଯିବ; ରାଧାନାଥ ତାକୁ ସାକ୍ଷାତ ଲକ୍ଷ୍ମୀଦେବୀ ମନେ କରି ପୂଜା କରିଛନ୍ତି । ଦେଶର ବଣ ପାହାଡ଼, ନଦୀ ହ୍ରଦ ଥିଲେ ରାଧାନାଥଙ୍କର ଦେବତା । ରାଧାନାଥ ଗାଁ ଗାଁ ବୁଲି ଏହିମାନଙ୍କୁ ଦର୍ଶନ କରିଛନ୍ତି, ପୂଜା କରିଛନ୍ତି; ନିଜ କାବ୍ୟରେ ଏହିମାନଙ୍କ ସ୍ତବ, ସ୍ତୁତି ଓ ବର୍ଣ୍ଣନା କରିଛନ୍ତି ।

'ମହାଯାତ୍ରା' ତାଙ୍କର ପ୍ରସିଦ୍ଧ କାବ୍ୟ; କିନ୍ତୁ ଏହା ଅଧା ରହିଯାଇଛି । ତାହା ଶେଷ ହେବା ପୂର୍ବରୁ ରାଧାନାଥ ମରିଗଲେ; ସାଧୁଭାଷାରେ କହିବାକୁ ଗଲେ 'ମହାଯାତ୍ରା' କଲେ । ରାଧାନାଥ ଠାଏ ତାଙ୍କ କବିତାରେ ଲେଖିଛନ୍ତି—ମଣିଷ ଜନ୍ମ ହେବା ଆଗରୁ ମରିବା ଫାଶ ବେକରେ ପିନ୍ଧି ଜନ୍ମ ହୁଏ ! ତା ଅର୍ଥ, ଯେ ଜନ୍ମ ହେବ, ସେ ନିଶ୍ଚୟ ମରିବ । ସେହିପରି ଲକ୍ଷ ଲକ୍ଷ ଲୋକ ମରୁଛନ୍ତି; ରାଧାନାଥ ବି ମଲେ । କିନ୍ତୁ 'ରାଧାନାଥ' ଏ ନାମ ଆମ ଦେଶ ଭୁଲି ପାରିବ ନାହିଁ । 'ଚିଲିକା' 'ମହାଯାତ୍ରା' ଇତ୍ୟାଦି ଥିବାତକ ଆମ ଦେଶ ଲୋକେ ତାଙ୍କୁ ପୂଜା କରୁଥିବେ—ଯେପରି ବଡ଼ ଦେଉଳରେ ଜଗନ୍ନାଥଙ୍କୁ ପୂଜା କରୁଛନ୍ତି ।

ସବୁ ସ୍କୁଲ ବୁଲି ଦେଖି, ଅଫିସ କାମ କରି ମଧ୍ୟ ରାଧାନାଥ ଯେ ଏତେ ବହି ଲେଖିବାକୁ କିପରି ସମୟ ପାଉଥିଲେ; ତାହା ଭାବିହୁଏ ନାହିଁ ।

୧୯୦୮ ମସିହାରେ ଷାଠିଏ ବର୍ଷ ବୟସରେ ରାଧାନାଥ ଦେହତ୍ୟାଗ କଲେ । କଟକ ସହର ଚଉଧୁରୀ ବଜାରରେ ତାଙ୍କ ପ୍ରତିମୂର୍ତ୍ତି ରହି ପୂଜା ପାଉଛି । ମହାନଦୀ କୂଳ ସତୀଚଉରା ମଶାଣିରେ ତାଙ୍କର ସମାଧି ମନ୍ଦିର ରହିଛି ।

ରାଧାନାଥ ତାଙ୍କ କବିତାରେ ଲେଖିଛନ୍ତି—

"ଧର୍ମ ଏକା ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର ବାରିଧି,
ଧର୍ମ ଏକା ସିନା ମହତପଣିଆ
ଆଉ ସବୁ କଥା ଅଡ଼େଇ ଦିନିଆ ।"

× × × ×

"କେହି ରହି ନାହିଁ ରହିବ ନାହିଁ ଟି
ଭବରଙ୍ଗ ଭୂମି ତଳେ,
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।"

× × × ×

"ଧିକ ସେ ସଂସାର ପ୍ରବଳର ପକ୍ଷେ
ସବୁ କଥାରେ ସୁଯୋଗ
ଦୁର୍ବଳର ପକ୍ଷେ କରମ ଲିଖନ
ମାରିବେ ଲଙ୍ଘିନା ଯୋଗ ।"

ରାଧାନାଥଙ୍କ କବିତାର ପ୍ରତ୍ୟେକ ପଦ ଗୋଟିଏ ଗୋଟିଏ ରତ୍ନ । ମଣିଷ ଚେଷ୍ଟା କଲେ ଟଙ୍କା ପଇସା ପାଇବ । ସୁନାରୁପା ରତ୍ନ ମଧ୍ୟ ମିଳିପାରେ । କିନ୍ତୁ ଏପରି ପଦେ ପଦେ କବିତା ମିଳିବା ସହଜ ନୁହେଁ, ସମ୍ଭବ ବି ନୁହେ । ହଜାର ହଜାର ଲୋକ ତାକୁ ପଢ଼ି ଆନନ୍ଦ ପାଉଛନ୍ତି । ଆମେ ପଢ଼ିଲେ ବି ଆନନ୍ଦ ପାଇବା, ଶିକ୍ଷା ପାଇବା ।

———

କଟକ ପ୍ରିଣ୍ଟିଂ ହାଉସ୍, ବାଲୁବଜାର, କଟକରେ ମୁଦ୍ରିତ

